DHARMA KARMA

# ଧର୍ମ-କର୍ମ ।

"ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ" ।

—*:O:*—

ଶ୍ରୀଦୀନବନ୍ଧୁ ଗଡ଼ନାୟକଙ୍କ ଦ୍ୱାରା
ରଚିତ ଓ ପ୍ରକାଶିତ

—*:O:*—

ହିତୈଷିଣୀ ଇଲେକ୍ଟ୍ରିକ୍ ମେଶିନ ପ୍ରେସରେ
ମୁଦ୍ରିତ ।

ବାମଣ୍ଡା ।

୧୯୧୨

—::O::—

ମୂଲ୍ୟ ଏକଅଣା ମାତ୍ର ।

# ଉତ୍ସର୍ଗପତ୍ର ।

ପରମାରାଧ୍ୟ

ଶ୍ରୀଶ୍ରୀପତି ଗଡ଼ନାୟକ ପିତା ମହୋଦୟଙ୍କ

ଶ୍ରୀକର କମଳେଷୁ ।

ପିତଃ !

ଆପଣଙ୍କର ପ୍ରତି ପଦ-ବିକ୍ଷେପରେ ସ୍ୱାବଲମ୍ବନ ଅଙ୍କିତ । ଆପଣଙ୍କ ଜୀବନରେ ଧର୍ମ୍ମ-କର୍ମ୍ମର ସମନ୍ୱୟ କାହାରିକୁ ଅବିଦିତ ନାହିଁ । ଏଣୁ ମୋର ଏକ୍ଷୁଦ୍ର ପୁସ୍ତକ ଖଣ୍ଡିକ ଆପଣଙ୍କର ଶ୍ରୀଚରଣ କମଳରେ ଅର୍ପଣ କଲି ।

ଭଉହିବି, ବାମଣ୍ଡା
ତା ୨୮ ଅଗଷ୍ଟ ୧୯୧୨

ଆପଣଙ୍କର ସେବକ
ଦୀନବନ୍ଧୁ

ଉତ୍କଳର ଲବ୍ଧପ୍ରତିଷ୍ଠ ଲେଖକ, 'ଶୈବଳିନୀ' ପ୍ରଣେତା, 'ଭୁଲୁଘଣ୍ଟାର' ଓ 'ରଘୁବଂଶର' ଉତ୍କଳପଦ୍ୟାନୁବାଦକ, ସଙ୍ଗୀତ ବହୁବିଧ ଉଚ୍ଚ ଭାବପୂର୍ଣ୍ଣ କବିତା ରଚକ, କର୍ମ୍ମବୀର

# ଶ୍ରୀମାନ୍ ବଳଭଦ୍ର ଦେବ ବତ୍ତକୁମାର

## ମହୋଦୟଙ୍କର ମନ୍ତବ୍ୟ :—

ମୁଁ ଏହି ଧର୍ମ୍ମ କର୍ମ୍ମ ପୁସ୍ତକ ଆମୂଳ ପାଠ କରିଅଛି । ଯେଉଁ କର୍ମ୍ମ ଦ୍ୱାରା ଦେଶର ଓ ସମାଜର ସମ୍ୟକ୍‌ରୂପେ ଉପକାର ସାଧିତ ହେବ, ଯେଉଁ କାର୍ଯ୍ୟ ସାଧନରେ ମାନବ ଏହି ମାନବ ଦେହରେ ଅମରତ୍ୱ ଲାଭକରି ଚୀର ଜୀବନ ସୁଖ ଶାନ୍ତିରେ ଅତିବାହିତ କରି ପାରିବ, ପୁଣି ସେହିସବୁ କାର୍ଯ୍ୟ ଓ ସାଧନା ମନୁଷ୍ୟ କିପରି ସର୍ବ୍ବାନ୍ତଃପୃନ୍ତାଙ୍କର ବିନାହିତ ସୂକ୍ଷ୍ମ ମୂଳନୀତି ଅନୁସରଣକରି ଜୀବନର କର୍ତ୍ତବ୍ୟ ପଥରେ ଅଗ୍ରସରହେବ, ଲେଖକ ତାହା ଗଭୀର ଗବେଷଣା କରି ଏଥିରେ ସନ୍ନିବେଶିତ କରି ଅଛନ୍ତି । ଫଳତଃ ଏହି ପୁସ୍ତକ ପାଠକରି ମୁଁ ଅତ୍ୟନ୍ତ ପରିତୁଷ୍ଟ ହୋଇଅଛି । ଏହିପରି ପୁସ୍ତକ ପ୍ରଚାରଦ୍ୱାରା ଉତ୍କଳ ସାହିତ୍ୟର ଓ ଦେଶର ବିଶେଷ ଉପକାର ସାଧିତ ହେବ ।

(ସ୍ୱାକ୍ଷର) ଶ୍ରୀବଳଭଦ୍ର ଦେବ ।

# ଧର୍ମ୍ମ—କର୍ମ୍ମ ।

୧

ଭାନୁ ଆଗମନେ ଫୁଟେ କମଳିନୀ ,
ଝୁଲ ଝୁଲ ସ୍ୱଚ୍ଛସରେ ବିନୋଦିନୀ;
ନିଜ ଧନେ କାଯ୍ୟ-ମନ-ପ୍ରାଣ ଭାର ।
ଅପର ଯା' କିଛି ସକଳ ଟଳିଲ ,
ସ୍ଥିର ବହୁକାଳ ନିଜସ୍ୱ ସମୂଳ ;
ବୁଝ କି'ବା ପର କି' ବା ଅପଣାର ।

୨

ନିଜ ଧର୍ମ୍ମେ ପଞ୍ଚେ ତନୁ-ତ୍ୟାଗ ଶ୍ରେୟ ,
ପର ଧର୍ମ୍ମେ ସଦା କରିବ ହେ ଭୟ ;
ପୁରାଣ-ବଚନ ଘୋଷେ ବାରମ୍ବାର ।
ଏ ସାର ବଚନେ କେତେ କେତେ ଜାତି ,
ଲଭିଣ ଉନ୍ନତ ପାଉଛନ୍ତି ଖ୍ୟାତି ;
ବୁଝ କି'ବା ପର କି'ବା ଅପଣାର ।

୩

ଏଭବ ମଣ୍ଡଳେ ଅପଣା ଜୀବନ ,
ନିଜ ବାସଗୃହ ଆତ୍ମୀୟ ସ୍ୱଜନ ;

ମମତା ଛେଦନେ ସୁଖମିଳେ କାର ?
ମାତୃଭୂମି ଅର୍ଥେ ସମସ୍ତି ଶତ୍ରୁତ,
ତୋଷଣ ସଙ୍କୁଚ ଉଠେ ସୁଖ-ସ୍ରୋତ ;
ତୁମ୍ଭ କିଂବା ପର କିଂବା ଆପଣାର ।

୪

ଧୀର ଦୃଢ଼ଭାବେ ହୁଅ ଅଗ୍ରସର,
ଲଙ୍ଘିବ କଷ୍ଟମୃ ବିପଦ-ସାଗର ;
ଶିବ ସତ୍ୟପଥେ ସହାୟ ଈଶ୍ୱର ।
ସ୍ୱଜାତି-ଗୌରବ କର ମୂଳ ମନ୍ତ୍ର,
ସହଜେ ଛିଣ୍ଡିବ ବେଲ୍ଲି ବାଜ ତନ୍ତ୍ର ;
ତୁମ୍ଭ କିଂବା ପର କିଂବା ଆପଣାର ।

୫

ଛାଡ଼ ପର କଥା, ଦେଖ ନିଜ ପଥ,
ଢାଳ ନିଜ-ଜ୍ଞାନ-ଚକ୍ଷେ ମନୋମତ ;
ପର ଗ୍ରନ୍ଥେ ନାଶ ହୁଏ କାରବାର ।
ଅଳ୍ପ ମର୍ଯ୍ୟାଦାରେ କଲେ ଅବହେଳା
ଅନୁତାପ ଜଳେ ତୁବେ ଶେଷେ ବେଳା ;
ତୁମ୍ଭ କିଂବା ପର କିଂବା ଆପଣାର ।

ପରିଶ୍ରମ ସ୍ପର୍ଶମଣିର ସଂଶ୍ରବେ ,
ଇସ୍ପାତ ତକ୍ଷଣେ କାଞ୍ଚନ ସମ୍ଭବେ ; ※
ବୁଦ୍ଧି-କରତଳ ରତନ ଭଣ୍ଡାର ।
ଜୀବନର ଲକ୍ଷ୍ୟ କର ସଦା ସ୍ଥିର ,
ଖୋଜେ ମୀନ ଜଳ ନିର୍ମଳ ଗଭୀର ;
ବୁଝ କି'ବା ପର କି'ବା ଅପଣାର ।

୭

ଈର୍ଷା , ଦ୍ୱେଷ , ହିଂସା , କୁଟିଳ ପ୍ରକୃତ ,
ନାଶଇ ପ୍ରତ୍ୟକ୍ଷେ ଜାତୀୟ ଉନ୍ନତ ;
ଯେବା ଯହିଁ ଥାଅ ଉତ୍କଳ ମାତାର—
ସକଳ ନନ୍ଦନ କର ଏକ କର୍ମ ,
ମାତୃ ସେବା ବିନା ନାହିଁ ଆଉ ଧର୍ମ ;
ବୁଝ କି'ବା ପର କି'ବା ଅପଣାର ।

୮

ସ୍ୱଜାତି କଳହ ବଢ଼ାଏ ଉତ୍ପାତ ,
ଜାତୀୟ ଶରୀରେ କରେ ଅସ୍ତ୍ରାଘାତ ;
ଜାତୀୟ ଶରୀରେ ପ୍ରାଣ ଅପଣାର—

※ କେବଘଡୀର 'ହେୟାରଷ୍ଟ୍ରିଂ'ର ମୂଲ୍ୟ ସୁନା ।

ସଞ୍ଜୀବିତ ହୋଇ, ଭୁଲଇ ଯେ ନର,
'ଅକାଳ କୁଷ୍ମାଣ୍ଡ' ଗୁଲ୍ଫ ଜନ୍ମ ତାର;
ତୁହୁଁ କିଂବା ପର କିଂବା ଅପଣାର ।

୯

ସ୍ୱ-ଅବଲମ୍ବନ ଯେତେକ କୌଶଳ,
ଉଦ୍ଭାବନ ବଳେ କର କାତବଳ,
ନିଜ ପଦେ ସ୍ଥିର ରଖ ଦେହ ଭାର ।
ପର ଭରସାରେ ଯଦି ହୁଅ ଭ୍ରାନ୍ତ,
ହେବ ଜଣାବନ୍ତେ ନିସ୍ପୃହ ଅଶାନ୍ତ;
ତୁହୁଁ କିଂବା ପର କିଂବା ଅପଣାର ।

୧୦

ଅନ୍ୟର ଅନିଷ୍ଟେ ଅପଣା ଗୌରବ,
ଏ ନୀତି ପୋଷଣେ ନାହିଁ ସମ୍ଭବ;
ନିଜର ଯୋଗ୍ୟତା ଏକମାତ୍ର ସାର ।
ତାଡ଼ଇ ସୁଖେ ଅପଣାର ସୁଖ,
ଢାଳିସ୍ପୃ ଗୌରବେ ନହୁଅ ବିମୁଖ;
ତୁହୁଁ କିଂବା ପର କିଂବା ଅପଣାର ।

୧୧

ତର୍କ-ପ୍ରତିବାଦ ମାତ୍ର ଆଡମ୍ବର ,
କର୍ମ୍ମ-ଅଗ୍ନି-କଣା ସତ୍ୟ ବହୁତର ;
ଦୂରେ ଯାଏ ଯେତେ ଦୁଃଖ ଅନ୍ଧକାର ।
ଆବ୍ରହ୍ମ ଜଗତେ ସର୍ବେ କର୍ମ୍ମରତ ,
କର୍ମ୍ମ ତୁଳନାରେ ନୀଚ ବା ଉନ୍ନତ ;
ଶୁଦ୍ଧ କିଂବା ପର କିଂବା ଅପଣାର ।

୧୨

କର୍ମ୍ମ-ହିମାଳୟେ କର ଆରୋହଣ ,
ଦୃଢ଼ତା ସ୍ୱସ୍ମୃତି ତପେ ତୋଷି, ଧଣ ;
ସୁଖ-ଶାନ୍ତି-ଗଙ୍ଗା ଅମୃତର ଧାର ।
ନାହିଁ ଭଲମନ୍ଦ ଦେଖ ସ୍ୱନୟନେ ,
ସ୍ୱ କର୍ତ୍ତବ୍ୟ କର ସ୍ଥିର ଆତ୍ମ-ଜ୍ଞାନେ ;
ଶୁଦ୍ଧ କିଂବା ପର କିଂବା ଅପଣାର ।

୧୩

ସର୍ବ ଶକ୍ତିମାନ ଅତ୍ମା ସୁଜାଗ୍ରତ ;
ବୁଦ୍ଧି-ଦୁର୍ଗା-ଜୋଧିତ ପ୍ରସରେ ନମ୍ରତ ;
ଷଡରିପୁ ଶିର ପଦତଳେ ତାର ।

ସୁମଙ୍ଗଳ ଶିବ ଯହିଁ ରୂପେ ସ୍ଥିତ,
ସର୍ବସିଦ୍ଧି ହ ଧର୍ମରାଜ୍ଞ ବାଞ୍ଛିତ ;
ତୁମ୍ଭ କିମ୍ବା ପର କିମ୍ବା ଅପଣାର ।

୧୪

କୀର୍ତ୍ତି-ଭକ୍ତି-ବିଦ୍ୟା ଏହି ଯେ ତ୍ରିବେଣୀ,
ଜ୍ଞାନଯଶ କଳ୍ପତରୁ ଧାତୁ ବେନ
ମାନବର ଏହା ଅକ୍ଷୟ ଭଣ୍ଡାର ।
"ମନ୍ତ୍ର ସାଧନା ବା ଶରୀର ପାତନ,"
ମହା ପୁରୁଷର ଶ୍ରେଷ୍ଠ ଗଣ୍ଠିଧନ ;
ତୁମ୍ଭ କିମ୍ବା ପର କିମ୍ବା ଅପଣାର ।

୧୫

ଧରମେ କରମେ ନାହିଁଟି ପ୍ରଭେଦ,
ଅଳ୍ପ ଜ୍ଞାନୀଏ ଗଣନ୍ତି ପ୍ରମାଦ ;
ସଂସାର କଦାଚ ନୁହଇ ଅସାର ।
ଜୀବଗଣର ଏ କରମ-ମନ୍ଦିର,
କର୍ମନାଶେ ନାଶ ଧରମ ଶରୀର ;
ତୁମ୍ଭ କିମ୍ବା ପର କିମ୍ବା ଅପଣାର ।

୧୬

ଗୃହାଶ୍ରମ ବିନା ପ୍ରଧାନ ଅଶ୍ରମ,
ଚତୁର୍ବର୍ଗ ଲଭ ଏଥି ନାହିଁ ଭ୍ରମ,
ମହାପୁରୁଷଙ୍କ କର୍ମ ଫଳାଧାର ।
ସୃଷ୍ଟି କଉଶଳ ନୁହଇ ବଫଳ,
ତାହା ଅନୁସର ବୁଦ୍ଧିଜର ବଳ;
ତୁହ୍ୟ କିବା ପର ହବା ଅପଣାର ।

୧୭

ହୃଦୟ ହୁନୁଭ ହଥଇ ଉତ୍ସାହ,
ଜୀବନ ସମରେ, ଜୀବନ ପ୍ରବାହ-
ବାଧା ଅତିକ୍ରମି କର ସୁପ୍ରସାର ।
ଏହି ତ ସମସ୍ତ ମଧ୍ୟାହ୍ନ ଜୀବନ,
ଫଳଗଛେ ଫଳ କି ବନ୍ଧ ବନ୍ଧନ ?
ତୁହ୍ୟ ହବା ପର ହବା ଅପଣାର ।

୧୮

ଚକ୍ଷୁ, କର୍ଣ୍ଣ, ହସ୍ତ; ପଦ, ମନ, ବୁଦ୍ଧି,
ବାକ୍ୟାଦ ସକଳେ କରନ୍ତୁ ଶ୍ରୀବୃଦ୍ଧି;
ହହୁଦଉ ଏତେ ସେବିନ୍ୟ ଅଧିକାର !!

ଜଡ-ନୈଗୁଣ୍ୟରେ ଯଦି ନାହିଁ ଭୋଳ ,
ଜମାଂଶୁର୍ଧ୍ୱ ଅତଃପର ସର୍ବେ ଲୀନ ;
ବୁଝ କି'ବା ପର କିଂବା ଆପଣାର ।

୧୯

ହୃଦେ ଏକାଗ୍ରତା କରେ ଧନୁର୍ଦ୍ଧର ,
ଯାର ଧନଞ୍ଜୟ ଖ୍ୟାତି ରୁଦ୍ରେଶ୍ୱର ;
କଲେ ପାଶୁପତ ଅସ୍ତ୍ର ଅଧିକାର ।
ସ୍ତୁତକୁ କର୍ତ୍ତବ୍ୟ ଅଟଇ ସିନା ଶ୍ରେୟ ,
ଅବଶ୍ରାନ୍ତ ଯତ୍ନେ ସଫଳ ନିଶ୍ଚୟ ;
ବୁଝ କି'ବା ପର କିବା ଆପଣାର ।

୨୦

ସମାନେ ସୁଫଳ, ବନ୍ଧୁତା ସ୍ଥାପନ ,
ଅଛି ସ୍ନେହ ହୁଏ ଅନନ୍ତ କାରଣ ;
'ଅଛି' ଯହିଁ ତହିଁ ହୃଦୟ ବ୍ୟାପାର ।
ଅଛି ସ୍ୱାର୍ଥପର ଜାଣ ଏହି ସ୍ଥାନ ,
ଅଟେ ଧୀରେ କର 'ସଂଶୟ' ସନ୍ଧାନ ;
ବୁଝ କି'ବା ପର କିବା ଆପଣାର ।

୨୧

ନଖ, ନାସା, ଦନ୍ତ, ଶୃଙ୍ଗ ବା ଚରଣ,
ପକ୍ଷ ବା ସଂଶସ୍ତ୍ର ଏତେକ ପ୍ରଧାନ,
ପ୍ରାଣୀଗଣର ଆତ୍ମରକ୍ଷା ଭାର ।
ଆତ୍ମ-ରକ୍ଷା ଅଟେ ପ୍ରିୟ ଧର୍ମ୍ମ-କର୍ମ୍ମ,
ନରର କୃପାଣ ବାହୁ, ବୁଦ୍ଧି ବର୍ମ୍ମ;
ଲୁଟ କି'ବା ପର ହ'ବା ଆପଣାର ।

୨୨

କି ହେଉ ? ସ୍ୱକାର୍ଯ୍ୟେ ଯଦି ଦେହ ନାଶ,
ସମରେ ପତନେ ହୁଏ ସ୍ୱର୍ଗ ବାସ ;
ସେ ସବୁ କାର୍ଯ୍ୟ ଫଳ ଅବିନାଶ ତାର ।
ବାରିଧି-ତରଙ୍ଗ କେ କରଇ ଅନ୍ତ,
ଉତ୍ତମ କର୍ମ୍ମର ପ୍ରବାହ ଅନନ୍ତ ;
ଲୁଟ୍ ହ'ବା ପର କି'ବା ଆପଣାର ।

୨୩

କରମ-ଧରମ ଦ୍ୱୟ ଅନ୍ନ-ଜଳ,
ନୀତି ପରିଧେୟ, ଗୃହ କଉଶଳ ;
ରକ୍ଷା ପ୍ରାଣବାୟୁ, ବୁଦ୍ଧି ଶ୍ରୀ-ଆଗାର ।

ଏକ୍ଷୁଦ୍ର ଜଗତ ଆପଣା ଶରୀର ,
ସଦା ମନ ପ୍ରାଣ କର ଏଥି ସ୍ଥିର ;
ଭୁଲ୍‌ କିଂବା ପର କିଂବା ଆପଣାର ।

୨୪

ହୃଦୟ ଭିତରେ ବହଇ ସତତ
ଆଶା ଫଲ୍‌ଗୁ ନଦୀ ଅଛନ୍ତି ଅନନ୍ତ ;
ଏକ ପୁରୁଷାତ୍ମା-ପ୍ରକୃତି (ଶରୀର) ଦ୍ୱାର ।
ଏକ ମହାଶକ୍ତି ହୋଇ ଦ୍ୱନ୍ଦ୍ୱ ସଂଶ୍ଳେଷଣ ,
ଦ୍ୱାଧାତାର ଇଚ୍ଛା ହୁଅଇ ପୂରଣ ;
ଭୁଲ୍‌ କିଂବା ପର କିଂବା ଆପଣାର ।

୨୫

ଏକତା , ଉତ୍ସାହ , ଆଶା , ଧୈର୍ଯ୍ୟବଳ ,
ସାହସ , ଆରମ୍ଭ , ସୁଦୃଢ଼ କୌଶଳ ,
ପ୍ରତିଦ୍ୱନ୍ଦ , ଏତେ ଐଶ୍ୱର୍ଯ୍ୟ ଅଗାର ।
ପଢ଼ ପୁଣି ଉଠେ ଯେଉଁ ନରବର ,
ସେ ଯେ ସୁଧୀବର ସେହି ସୁଧୀବର ,
ଭୁଲ୍‌ କିଂବା ପର କିଂବା ଆପଣାର ।

୨୬

ମରଲେ ପୁଣିକି ଅଛି ଜନ୍ମାନ୍ତର ?
ନର କେଉଁ ଭାବେ ହୁଅଇ ଅମର ?
ଜୀବାତ୍ମା-ଈଶ୍ୱର ତତ୍ତ୍ୱ କ ପ୍ରକାର ?
ସ୍ୱରଗ-ନରକ କାହିଁ ସେହୁ ସ୍ଥାନ ?
'ଅଦୃଷ୍ଟ'ର ନର ଅଟେ କି ଅଧୀନ ?
ବୁଝ କି'ବା ପର କି'ବା ଅପଣାର ।

୨୭

ପ୍ରକୃତ ସହିତ ସମ୍ବନ୍ଧ ପ୍ରାଣୀର ,
ଇଚ୍ଛା-ଶକ୍ତି , ସ୍ୱାସ୍ଥ୍ୟ , ନିଜ ଅଧିକାର ;
ଇଷ୍ଟାନିଷ୍ଟ ପୁଣି କିବା ସୁଖାଧାର ?
ଜନମ ରହସ୍ୟ , ସୃଷ୍ଟିର ବିଧାନ ,
ଜ୍ଞାନ-ବିଜ୍ଞାନର କର ସୁସନ୍ଧାନ ;
ବୁଝ କି'ବା ପର କି'ବା ଅପଣାର ।

୨୮

ଘୋରସ୍ୱାର୍ଥ ଦୋଷେ ଧର୍ମ କଳୁଷିତ ,
ସାମ୍ୟନୀତି ଜଳେ କର ପ୍ରକ୍ଷାଳିତ ;
ଜନ୍ମଭୂମି କରେ ଶ୍ରୀରେ ବିହାର ।

ବ୍ୟାପ୍ତ ସଦା ଅଙ୍ଗେ ଅଙ୍ଗେ ହୃଦ-ସ୍ଥଳ ,
ବ୍ୟବହାର-ବେଦ ପଗ୍ଣୀ-ସମୂଳ ;
ବନ୍ଧୁ କିଂବା ପର କିଂବା ଆପଣାର ।

୨୯

ଦାରିଦ୍ର୍ୟ ଘଟିଲେ ଲକ୍ଷ୍ମୀ ହୁଏ ଛାଡ଼,
ଲକ୍ଷ୍ମିତର ତେଜ ନରହେ ସତତ ;
ନଷ୍ଟତେଜେ ଅବଜ୍ଞା , ତହିଁରୁ ଧିକ୍କାର ।
ଧିକ୍କାରରେ ଶୋକ , ଶୋକେ ବୁଦ୍ଧିଭ୍ରଂଶ ,
ବୁଦ୍ଧିଭ୍ରଂଶ ହେଲେ ପ୍ରାଣ ହୁଏ ନାଶ ;
ବନ୍ଧୁ କିଂବା ପର କିଂବା ଆପଣାର ।

୩୦

ସର୍ବ ସିଦ୍ଧିଦାତା ଅର୍ଥ ଉପାର୍ଜ୍ଜନେ ,
ମାତୃଭୂମି ମହା କଲ୍ୟାଣ ସାଧନେ ;
ବଢ଼ାଇବା ପାଇଁ ଟେକ ସମାଜର ।
ମହା ଘୋର ବାଧାବିଘ୍ନ ଅତିକ୍ରମି ,
ଦୂର ଦେଶାନ୍ତରେ ଅହରହ ଭ୍ରମି ;
ବନ୍ଧୁ କିଂବା ପର କିଂବା ଆପଣାର ।

୩୧

ଉଚ୍ଚ ଶିକ୍ଷା ହଏ ସୁବୁଦ୍ଧି ଜନ୍ମପ୍ରୁ ,
ବୁଦ୍ଧିରୁ ତ ଗୁଣ କରଇ ଅଶ୍ରପ୍ରୁ ;
ଗୁଣବାନ ପୂଜ୍ୟ ଅଟେ ଜଗତର ।
ପୂଜ୍ୟନର ସଦା ଦେବତା ସମାନ ,
ଦେବତ୍ୱରେ ଲକ୍ଷ୍ମୀ-ଦେବୀ ଅଧିଷ୍ଠାନ ;
ବୁଝ କିବା ପର କିବା ଅପଣାର ।

( ୩୨ )

ପ୍ରାଚୀନ ଭାରତ ସୂକ୍ଷ୍ମ ଶିଳ୍ପରାଜି ,
ଗଲଣି ଏଦେଶୁ ଏବେ ସବୁ ଭାଜି ;
ବିଜ୍ଞାନ କୌଶଳେ ଶ୍ରୀବୃଦ୍ଧି ତାହାର
କର , ଅନ୍ୟ ଦେଶେ ପ୍ରତିଯୋଗୀ ବଳେ ,
ଉଡାଅ କେତନ ଭାରତ ମଣ୍ଡଳେ ;
ବୁଝ କିବା ପର କିବା ଅପଣାର ।

( ୩୩ )

ସ୍ୱଭାବେ ତ ଧନ-ଆକର୍ଷକ ବନେ ,
ମିତ୍ରତ୍ୱ-ସୁଧାଂଶୁ-ବରଷା- ପବନେ ,
ଏ ଭାରତ ସ୍ୱର୍ଣ୍ଣ ପ୍ରସୂ କର ନର ।

ବୈଜ୍ଞାନିକ ଜ୍ଞାନେ ବୈଜ୍ଞାନିକ ଯନ୍ତ୍ରେ ,
ପଶୁପୁଷ୍ଟି କର ଆଉ କୃଷି ମନ୍ତ୍ରେ ;
ବୁଝ କି'ବା ପର କି'ବା ଆପଣାର ।

( ୩୪ )

ଚରକ, ସୁଶ୍ରୁତ ଆଉ ଆୟୁ-ତନ୍ତ୍ର ,
ସ୍ୱଦେଶୀ ରୀତିରେ କର ସମୁନ୍ନତ ;
ସ୍ୱର୍ଗ-ସୁଖାଧାର ଏହି ଶରୀରର
ଅନାୟାସେ ରୋଗ-କ୍ଳେଶ କରି ଦୂର ,
ଦୀର୍ଘ ଦେବ-ଆୟୁ ସଦା ଭୋଗକର ;
ବୁଝ କି'ବା ପର କି'ବା ଆପଣାର ।

( ୩୫ )

ଅବ୍ୟକ୍ତ ଅଚିନ୍ତ୍ୟ ବିଶ୍ୱ-ମୂଳାଧାର ,
ଅଖିଳ ବ୍ରହ୍ମାଣ୍ଡପତି ନିରାକାର ;
ମହାତ୍ମା ମହା ମହିମା ଈଶ୍ୱର
ଶାଶ୍ୱତ ଗାୟତ୍ରୀ ଛନ୍ଦେ ଛନ୍ଦେ ଧାୟୀ
ଜୀବନ-କର୍ତ୍ତବ୍ୟ ପଥେ ଚାଲ ଭାଇ !
ବୁଝ କି'ବା ପର କି'ବା ଆପଣାର ।

ଓଁ ଶାନ୍ତିଃ ! ଶାନ୍ତିଃ ! ଶାନ୍ତିଃ !

